# ମାନସୀ



ଶ୍ରୀ ବିପିନ ବିହାରୀ ଖମାରୀ

ପ୍ରକାଶକ—
ଶ୍ରୀ ବିପିନ ବିହାରୀ ଖମାରୀ
ଚୁରଗାଁ
ପୋଃ ଅଃ— ବଡ଼କୁଟ୍ରୁ
ଜିଃ— କଳାହାଣ୍ଡି

ପ୍ରଥମ ପ୍ରକାଶ— ୫୦୦
ମୂଲ୍ୟ— ଛଅ ଅଣା
୧୯୫୩

ମୁଦ୍ରାକର— ଶ୍ରୀ ନିମାଇଁ ଚରଣ ପଟ୍ଟନାୟକ,
ପରିଚାଳକ, ଶ୍ରୀ କିଶୋର ପ୍ରିଣ୍ଟିଙ୍ଗ୍ ୱାର୍କ୍ସ,
ପାରଳାଖେମୁଣ୍ଡି ।

# ଉପହାର

ଶ୍ରୀ ________________________________ଙ୍କ

କରକମଳରେ..................... ନିଦର୍ଶନ

ସ୍ୱରୂପ ଅର୍ପଣକଲି ।

ଲେଖକ—

।

# ପଦେଅଧେ—

ଅଳ୍ପ ଦିନ ତଳେ ଲିଖିତ କେତୋଟି କବିତାର ଏକତ୍ର ସଂଚୟନରେ 'ମାନସୀ'ର ଜନ୍ମ । ଏହି ପୁସ୍ତିକା ଛପାଇବା ବେଳେ ମୁଁ ଯେତିକି ଆନନ୍ଦିତ ସେତିକି ଦୁଃଖିତ ମଧ୍ୟ । କାରଣ ମୁଁ ବେଶ୍ ବୁଝି ପାରୁଛି ମୋର କବିତା ଗୁଡ଼ିକର ଅପରିପକ୍ୱତା ଏ ପର୍ଯ୍ୟନ୍ତ ଅସିଦ୍ଧ । ବହି ଛପାଇ କବି-ପଦ ଲାଭ କରିବାର ଅଭିଳାଷ ମୋର ନାହିଁ । କିନ୍ତୁ ମୋର ବନ୍ଧୁଗଣଙ୍କର ଅନୁରୋଧ ଏଡ଼ାଇ ନପାରି ଏପରି ଏକ ଦୁଃସାହାସିକ କାର୍ଯ୍ୟରେ ହାତ ଦେଇଛି ମାତ୍ର । ପାଠକଙ୍କରେ ଧୃଷ୍ଟତା ମାର୍ଜନୀୟ ।

ଏହା ସ୍ୱୀକାର୍ଯ୍ୟ ଯେ ମୋର ଅଲକ୍ଷ୍ୟରେ କେତେକ ପ୍ରତିଭାଶାଳୀ କବି ବା ଲେଖକଙ୍କ ଦ୍ୱାରା ମୁଁ ପ୍ରଭାବିତ ହୋଇଛି— ଏଥିପାଇଁ ମୁଁ ସେମାନଙ୍କ ଠାରେ ଋଣୀ । ସହୃଦୟ ପାଠକ-ପାଠିକାଗଣ ଯଦି ଏଥିରେ ମୋର କିଛି ସ୍ୱାତନ୍ତ୍ର୍ୟ ବା ମୌଳିକତା ଲକ୍ଷ୍ୟ କରି ପାରନ୍ତି ତାହା ହେଲେ ମୋର ଶ୍ରମ ସାର୍ଥକ ମଣିବି ।

'ମାନସୀ' ମୋର ପ୍ରଥମ ଚେଷ୍ଟା । ସୁତରାଂ ଠାଏ ଠାଏ ଭ୍ରମ ରହି ଯାଇଥିବା ସ୍ୱାଭାବିକ । ମୋର ଆଶା ସହୃଦୟ ଲେଖକ ଓ ପାଠକ ସମସ୍ତ ତ୍ରୁଟି କ୍ଷମଣୀୟ ।

ଓଡ଼ିଶାର ବରିଷ୍ଠ କଥା-ଶିଳ୍ପୀ ଓ ସାହିତ୍ୟିକ

ମୋର ପୂଜ୍ୟ ଗୁରୁ ଅଧ୍ୟାପକ ଶ୍ରୀ ରାଜକିଶୋର ରାୟ ପୁସ୍ତିକାଟି ପାଠକରି ନିଜର ଅଭିମତ ଦେଇଥିବାରୁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ ।

ମୋର କଲେଜ—ପଢ଼ାଦିନରେ ଯେଉଁମାନେ ମୋତେ ସାହାଯ୍ୟ କରୁଛନ୍ତି ସେମାନଙ୍କ ମଧ୍ୟରେ ଜୁନାଗଡ଼ (କଳାହାଣ୍ଡି)ର ଶ୍ରୀଯୁକ୍ତ ବଦ୍ୟାଧର ସାହୁ ପ୍ରଧାନ; ତାଙ୍କର ସାହାଯ୍ୟ ବିନା ମୁଁ ପଢ଼ିପାରି ନଥାନ୍ତି ଏବଂ ଆଜି ଏ ପୁସ୍ତିକା ପ୍ରକାଶ କରିବାର ସୁଯୋଗ ମୋତେ ମିଳି ନଥାନ୍ତା—ତାଙ୍କର ଉପକାର ମୁଁ ଜୀବନରେ ଭୁଲି ପାରିବିନି ! ପୁନଶ୍ଚ ମୋର ପୂଜ୍ୟ ଗୁରୁ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମହାପାତ୍ର ବି. ଏ; ଡି. ଇଡ଼. (ବର୍ତ୍ତମାନ ଧର୍ମକୋଟ ହାଇସ୍କୁଲର ହେଡ଼ମାଷ୍ଟର) ଓ 'ମୂଳିଆପିଲା'ର ଲେଖକ ବାଙ୍କୀପୁରୁ ଶ୍ରୀଯୁକ୍ତ ପରଶୁରାମ ମିଶ୍ର (ବର୍ତ୍ତମାନ ଭବାନୀପାଟଣା ମ୍ୟୁନିସିପାଲିଟିର ଚେୟାରମାନ୍)

ମୋର ଲେଖା ଲେଖି କରିବାପାଇଁ ଯେଉଁ ଉତ୍ସାହ ଓ ପ୍ରେରଣା ଦେଇଛନ୍ତି ତାହାର ଯୋଗୁଁ ହିଁ ଆଜି 'ମାନସୀ' ବାହାର ଜଗତକୁ ଆସିପାରିଛି-ପୂଜ୍ୟ ଗୁରୁଦ୍ୱୟଙ୍କ ନିକଟରେ ମୋର ନମନୀୟ କୃତଜ୍ଞତା । ଏହାଛଡ଼ା ପ୍ରୁଫ୍ ସଂଶୋଧନ, ମୁଦ୍ରଣ ଖର୍ଚ୍ଚ ଓ ଅନ୍ୟାନ୍ୟ ବିଷୟରେ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଷଡ଼ଙ୍ଗୀ, ଶ୍ରୀ ଜଦପୂରନ୍ଦ ପାଣିଗ୍ରାହୀ, ଶ୍ରୀ ଅଶ୍ୱଘୋଷ ପ୍ରହ୍ଲାଦ ପଟ୍ଟନାୟକ, ଶ୍ରୀ ମେଘନାଦ ପ୍ରଧାନ ପ୍ରଭୃତି ମୋର ବନ୍ଧୁଗଣ ଯଥେଷ୍ଟ ସାହାଯ୍ୟ କରିଥିବାରୁ ସେମାନଙ୍କୁ ମୋର ହୃଦୟର କୃତଜ୍ଞତା ଜ୍ଞାପନ କରୁଛି ।

ପରିଶେଷରେ ଶଙ୍କରଘୋଷ ବାବୁ ମୁଦ୍ରଣର ଉନ୍ନତି ପାଇଁ ସହଯୋଗୀ ହୋଇ ଥିବାରୁ ତାଙ୍କୁ ମୁଁ ଧନ୍ୟବାଦ ଜଣାଉଛି ।

ଇତି

ଗଜପତି କଲେଜ ଛାତ୍ରାବାସ

ତା ୨୧-୩-୬୩

ଲେଖକ—

# ଅଭିମତ –

ଶ୍ରୀମାନ୍ ରବିନ ମହାନ୍ତି ମହାଶୟଙ୍କର 'ସାଧନା' କବିତା ପୁସ୍ତକ ମୁଁ ପଢ଼ିଅଛି । କବିତା ଲେଖି ଆତ୍ମ ପ୍ରକାଶ କରିବା ତାଙ୍କର ଏହା ପ୍ରଥମ ଉଦ୍ୟମ । ବୟସର ଧର୍ମ ଓ ଭାବର ଅନୁଭୂତି ତାଙ୍କୁ ଅସ୍ଥିର କରୁଛି । ଆତ୍ମପ୍ରକାଶର ପ୍ରଥମ କର୍ମରେ ସେ ଲିପ୍ତ ରହି ନିଜର ଭାବ ପ୍ରବଣ ହୃଦୟକୁ ଅନ୍ୟ ମାନଙ୍କ ଆଗରେ ଉନ୍ମୋଚନ କରୁଛନ୍ତି ।

କବିତା ଗୁଡ଼ିକ ଗୀତିମୟ । ପ୍ରାଣର ଉତ୍କଣ୍ଠା ବିଷାଦ, ପ୍ରଣୟ, ଆଶା ଓ ଆକାଙ୍କ୍ଷାର ସୁସ୍ପଷ୍ଟ ସ୍ୱାକ୍ଷର ସେଥିରେ ମୁଦ୍ରିତ ।

କବିତା ଗୁଡ଼ିକ ପଢ଼ିଲେ ତାହା ଯେ ପ୍ରଥମ ଉଦ୍ୟମର ସମ୍ଭାର ଏହା ମନେ ହେଉ ନାହିଁ । ପରିପକ୍ୱତାର ଓ ଭାବର ସଙ୍କେତ ଏଥିରେ ମିଳୁଛି । କେତେକ ସ୍ଥାନରେ ଗ୍ରାମ୍ୟତା ଓ ଗଦ୍ୟ ଭଙ୍ଗୀ ଦେଖାଦେଲେ ମଧ୍ୟ ତାହା ଅଭ୍ୟାସ ଓ ଅନୁଶୀଳନରେ ଯେ ଦୂର ନ ହେବ, ଏପରି ନୁହେଁ ।

" ନମ୍ର ଗଛ ଛନ୍ଦତଳେ ଯେବେ
ଥିଲୁ ଦୁହେଁ ସୁଖେ କ୍ରୀଡ଼ାରତ
ଝରଣାଟି କୁଳୁ ଉଚ୍ଛୁଳାଇ
ଗାଉଥିଲା କୁଳୁ କୁଳୁ ଗୀତ

ପକ୍ଷୀର କୂଜନ ଭରା
କାନନର ମଧୁର ମୂର୍ଚ୍ଛନା
ଶୁଭୁଥିଲା ଦୂର ଦିଗନ୍ତରେ
ଯେବେ ପ୍ରିୟେ ଅୟି ସୁଲୋଚନା ।"

ଉକ୍ତ ପଂକ୍ତି ଲେଖକଙ୍କର ସୁନ୍ଦର ଭାବଗୀତ ପ୍ରତି ମୋ ହୃଦୟରୁ ଅଶୀର୍ବାଦ ଢାଳୁଛି ।

ମୋର ବିଶ୍ୱାସ ଶ୍ରୀମାନ୍ ଷମାସ୍ତି ନନର ସାଧନା ଓ ଆବନ ପ୍ରଭୁ ଇଚ୍ଛାସମସ୍ତ କବିଭଙ୍ଗୀ ଅଶ୍ରୁରେ ଉତ୍କଳ ସାହିତ୍ୟକୁ କ୍ରମେ ସଂଯୁକ୍ତ କରିବେ ।

ପାରଳାଖିମୁଣ୍ଡି
ତା ୨୦—୮—୫୩ } (ସ୍ୱାକ୍ଷର) ଶ୍ରୀ ରାଜକିଶୋର ରାୟ

# ଷଷ୍ଠ ସର୍ଗ

ଜୀବନ ମୋ ଯେବେ ମଳୟ ପବନେ
ଉଚ୍ଛ୍ୱାସେ ଗନ୍ଧ ଭର
ସଙ୍ଗୀତ ତା'ର ସହସା ଏ ମୋର
ମରମେ ପଡ଼ନ୍ତ ଝର
କାନ୍ତ ମଧୁର ସେ ଗୀତ ଗାୟନେ
ତଥ ମୋହନ ସୁରେ
ଜନ୍ମନେଲା ଏ ରୂପସୀ 'ମାନସୀ'
ମୁଗ୍ଧ ଅନ୍ତର ପୁରେ
ଯୌବନ ଭରା ଯୌବନେ ଗଢ଼ା
ସେହୁ 'ମାନସୀ'ଟି ଅଜ
ଅନ୍ତର ଦେଇ ତୋଟି ତରୁଣର
କରପୁଟେ ଦେଲୁ ଯାଜ ।
ତବ ଯୌବନ ବାସନା ମୋ ନାହିଁ—
ସେ ରୂପେଁ ମରମ ତୃଷା
ତଥାପି କୋଷ୍ଟଏ ଅନ୍ତରେ ଏ ଯେ
ପୁଲକ ଅଣିବ, ଅଣା—

ବିପିନ ବିହାରୀ—




# ମାନସୀ

କବିତା......... ସେ ମୋ ବନ୍ଧୁର ସାଥି
ସ୍ୱପନେ ମୁଁ ଶୋଇ ତା' ସାଥେ ମାତି
ଶତ ସୁରଭି ଘୂର୍ଣ୍ଣି ଗୋ,
ଭାବନା ରେ ମୋ ରୂପ ଧରେ ରଙ୍ଗ
ଖେଳାଏ ହୃଦେ ଆଶା—ତରଙ୍ଗ
ସେହି ମୋ ହୃଦ-ରାଣୀ ଗୋ ।

ମୋତେ ସେ କବେ      ଲାଗଇ ଅଧ
ନୂଆଇ ସତେ      ଯେ କେଉଁ କତ
ସୁଦୂର ଏକ ପଥେ ଯେ,
ଜଳଗନାଭ      ସ୍ୱରଜ ସାଗ
ଘୂଙ୍ଗର ଅଟେଣ,      ନାହିଁ ମୋ ଗୃହ;
ଦ୍ୱେଙ୍କବ ଦେଉଁ ମତେ ଚଯ ।

ଝପଟେଙ୍କ ଟପ୍ପୁ      ଦେଇଛୁ ତାରେ
ସ୍ୱବଇ କାଢ଼ି      ନୈବ ମୁଁ ବାରେ
ଲେଞ୍ଚଡ଼ବ ନାହିଁ ସଙ୍ଗ ତା',
ଦୂରେଇ ଦେଇ      ଯିବ ମୁଁ ଚୂଲି
ସଦଳ ସ୍ମୃତି      ଭୁଲିବ ଖାଲି
ଛୁଇଁବ ନାହିଁ ଅଙ୍ଗ ତା' ।

ପାରେ ନା କ୍ଷୁନ୍ନ      ପାଶୋରି ତାରେ
ସ୍ନେହ ଯେ ତାର      ଦାବୀ ମୋ ଠାରେ
ସେ ମୋର ପ୍ରିୟା.... ମାନସୀ
ସେ ମୋର ରାଣୀ      ହୃଦୟ ସାକ୍ଷୀ
ଜଗର ସେ ଗୋ      ଦରଦୀ ସାଥି
ନନ୍ଦନ ପ୍ରେମ-ସରସୀ ।

ଛବି ତା'ର ଅଲେଖ ମାଳେ
ଅଙ୍ଗର ତା' ମାଦକତାରେ
ହୁଏ ମୁଁ ଯେବେ ପାଗଳ,
ଚହିଁ ସେ ପାଏ ସ୍ୱରଗ ସୁଖ
ଅଲିଙ୍ଗନେ ମୋ ପାଶୋରେ ଦୁଃଖ
ଫୁଟାଇ ହାସ୍ୟ ସରଳ ।

କହତା ମୋର ମାନସୀ....ରାଣୀ
ଶୁଣେ ନା କାହିଁ ସେ ଗୂଢ଼ ବାଣୀ
ରହେନ ଅବରଣେ ଯେ,
ଶକ୍ତି ତା'ର ଅଛଇ ଭର
ଜବାବ ଦେବ ଦମ୍ଭ ଧର
ସମାଲୋଚକ ଗଣେ ଯେ ।



# କବିର ସ୍ୱପ୍ନ

କଲମ ମୁନରେ ଲେଖିଯାଏଁ ଯେବେ
ମନ ମୁଗ୍ଧାବକ କବିତା
ଦସ୍... ଦପ୍... ଦପ୍ ଝଲସି ଉଠଇ
ଯେସନେ ବାରୁଦ ସଳିତା
ପସ୍ୱଣ ମୂର୍ଚ୍ଛନା ସଙ୍ଗୀତ
ଧସ୍ୱ ଚଳେ ନାଚ ଗାଇ ଗାଇ ଗୁଞ୍ଜରିଁ
କାନଢେର ଶୁଣେ ଜଗତ ।

ପୂରୁବ ଆକାଶେ ଜ୍ୟୋତ୍ସ୍ନା ବିଞ୍ଚି
ଉଷା ଦେଲା ବଧୂ ବରଷେ
ସ୍ୱପ୍ନ ଦେଖଇ କବି ମୁଁ ନଭେଲେ
କାହିଁର କାଠିର ଘରଣେ
ବଚନର ହୁଏଁ ପୁଷ୍କଳେ
ଭାବି ପାରେ ନାହିଁ ସ୍ତବ୍ଧ ହୁଏ ମୁଁ
ପାପ ମିଥ୍ୟା ଭରା ମୂଲକେ ।

ସପନେଁ....ମୁଁ ହେବି ବଡ କବି ଜଣେ
ସଭିଙ୍କଠୁ ବଡ଼ ଧାଡ଼ିରେ
ଶ୍ରେଷ୍ଠ କବି ବୋଲି ପୂଜା ପାଉଥିବି
ଥିବି ଯେତେ ଦିନ ମହୀରେ
ବିଦା ନେବି ଯେବେ ସଂସାରୁ
କ୍ରନ୍ଦନ ସ୍ୱରେ ବିଦାୟ ଦେବେଟିରେ
ପୁଷ୍ପ ଝରିବ ଅମ୍ବରୁ ।

ଇତିହାସ ବକ୍ଷେ ଲେଖା ହୋଇ ଯିବ
ସ୍ମୃତି ମୋର ଯୁଗ ଯୁଗରେ
ଚିର ଦିନ ପାଇଁ ଅଛପା ଅଜଣା
ରହିଥିବ ଏହି ମରତେ,....
ହଠେ ହୁଅ ବଡ ଶବ୍ଦ
ଚଞ୍ଚଳ ଖୋଲି ଆଖି ମଳି ମଳି
ରଙ୍ଗିନ ସ୍ୱପନ ହାରିଲି ।



# ସ୍ମରଣିକା



ଉତ୍କଳ ଗୋ !

କୁହୁ କୁହୁ ତାନେ
ଗାଇ ଯାଉ ସୁମଧୁର ଗାନ
କେତେ କଣ୍ଠ ଭାବୁକ ପଣ୍ଡିତ
ନିତ ଶୁଣେ ତୋ ଅମୃତ ସ୍ୱନ
ଆଣେ କେତେ ହୃଦୟେ ସ୍ପନ୍ଦନ
ଅନ୍ତରେ ବା କେତେ ଜାଗରଣ
ତୋହର ଅମୀୟ ସ୍ୱନେ
ଧନ୍ୟ ଅଛି ଦୀନ କବି ପ୍ରାଣ !

କେତେ ଶୁଷ୍କ ନୀରସ ପଥରେ
 ଜାଗେ ଅଜ ନବ ଉଦ୍ଦୀପନା
ଦୁଷ୍ଟ ଶିଷ୍ଟ ଆସ୍ତିକ ନାସ୍ତିକ
 କରେ ଆଜ ତୋ' ପଦ ଅର୍ଚ୍ଚନା
ଶାନ୍ତି—ସୁଧା—ଅମୃତ ଝରଣା
ଝରେ ନିତ— ନାହିଁ ତା' କଳନା ।
ବହୁ ପୁଣି ଛନ୍ଦ ବନ୍ଧେ ବନ୍ଧେ
 ତୋଳି ଦିଏ ଅମୀୟ ମୂର୍ଚ୍ଛନା ।

ତୋର ସ୍ୱନେ ଦେଇ ଗୋ ଲହର
 ଗାଇ ଉଠେ ଯେବେ ପିକବର
ଝଂକୃତ କାନନ ଗିରି
 ଅହା ସତେ କେଡ଼େ ସୁମଧୁର !
ଦୂର ଉଠେ ପଷାଣ କନ୍ଦରି
ଖେଳେ କେତେ ଅନ୍ତରେ ଲହରି
ଅଜୀବନ ଅର୍ଘ୍ୟ ବାଢ଼ି ପୂଜେ
 ସତ୍ୟ—ଶିବ—ସୁନ୍ଦର ପଦୁର ।

ସ୍ମରଣିକା

ସ୍ରଷ୍ଟାଙ୍କର ଏ ସୃଷ୍ଟି—ରହସ୍ୟ
କେମନେ ମୁଁ ବୁଝିବି ନଟିନୀ
ବିଚ୍ଛେଦ ଓ ମିଳନର ଖେଳ
ଶୁଣେ, ଏହା ବିଧାତା କରଣୀ
ତେବେ କାଥ ଲୁହ ଲୁଏ ହାଣି
ତୋହଠାରୁ ବହୁ ଦୂରର ଯାଣି
ନାହିଁ ପାରେ ହେବ୍ୟ ଭରି ମୁହିଁ
ତୋ' ବିରହ ବେଦନା ଭଙ୍ଗିମା ।

ଦିନେ ଯେବେ କଣୋର ବୟସେ
ବସିଥିଲ ଲୋ କୂଳେ ଏକାକୀ
ଗାଉଥିଲ କେତେ ଗୀତ ତହିଁ
ଫୁଟିଥିଲା ଅନ୍ତର ପୁଲକ
ହୃଦୟର ଭାଷା ହୃଦେ ଢାଙ୍କ
କହିଥିଲ ମୋ ରୂପ ନିରେଖି
"ଅଙ୍ଗିବନ ଲେଖନ୍ତୁ କବିତା
ଦିନେ ଯେବେ କବି ହୁଅନ୍ତୁ କି" ।

ବାଲରଶ୍ମି କର ବକ୍ଷେ ପଡ଼ି
ହେଉଥିଲା ଜଳ ଜଳ ଯେବେ
ଛୋଟ ଛୋଟ ଉର୍ମିରାଶିମାନ
ନାଚୁଥିଲା ପକ୍ଷୀଗଣ ରବେ
ଖେଳୁଥିଲା ତରଙ୍ଗ ଗରବେ
ଉପହାସି ବିଶ୍ୱ—ପ୍ରାଣ ଯେବେ
ସେ ସମସ୍ତ ମନେ ପଡ଼େ ଆଜ,
ଜୀବନେ ମୁଁ ଭୁଲି ନାହିଁ କେବେ ।

ଅସ୍ତଗାମୀ ତପନ କିରଣ
ପଡ଼ି ତୋର କୋମଳ ହୃଦୟେ
ଖେଳିଯାଏ ପଲକେ ପଲକେ
ନବବଧୂ ଯେ ଜବ ପରଶେ
ପ୍ରିୟତମା ପ୍ରିୟତମ ପାର୍ଶ୍ୱେ
ବସି ଧୀରେ ଯେବେ ଉଠି ହସେ
ଭୁଲି ଧ୍ୟାନ ଜ୍ଞାନ ପ୍ରାଣ ମମ
ଭାସି ଉଠେ ସୌନ୍ଦର୍ଯ୍ୟ ରଭସେ !

ସ୍ମରଣିକା

ଆଜ ତୋତେ ଛାଡ଼ ଗୋ ଭଉଣୀ
ଯାଉଅଛୁ ଦୂର ଦେଶ ଚାଲି
ମରମର ଅକୁହା ପରଶେ
ତୋ ହୃଦୟ ନତ ହୁଏ ଭାଳି
ବନ୍ଧୁଜନ୍କୁ ଦେଖି ନାହିଁ ବୋଲି
ମନ ମୋର ଯାଉ ହୁଏ ଜାଳି
ଦେଖନ୍ତ୍ରିକ ତୋତେ କେତେ ଥରେ
କହୁ ଯାନ୍ତି ମନ କଥା ଖୋଲି ।

ଅଜ ଅଜ୍ର କଲ୍ଲୋଳ ବସନ୍ତେ
ଯୌବନର ତୋ କୂଳେ ଭଉଣୀ
ଅନ୍ତରର ଗୋପନୀୟ ଭାଷା
ଅଜ ଅଜ୍ର ଗୃପି , ଯଉବନ
ଫୁଟାଇବ ଅନ୍ତର କାହାଣୀ
ହେଲେ ହେଉ ତୋ କୂଳେ ଭଜାଣି
ଯାଜ ଦୁଃଖୀ କର ମୁହିଁ ଗାଏ
ତୋର ଗୀତ ଅଗୋ ନିର୍ଝରିଣୀ ।

ଝୁଣ୍ଟୁ ଝୁଣ୍ଟୁ ଯେ ନନାଦେ ଅଙ୍ଗ
ବନ୍ଧୁ ଯାଉଛୁ ତୁ ଝଟ ଝରଣା।

ଫୁଲୁ ଫୁଲୁ ଯେ ଶୈତ୍ୟ ପବନ—
ବନ୍ଧୁ ଖୋଲେ ଷୋଡ଼ଶୀ ଓଢ଼ଣା।

ଗୁଣୁ ଗୁଣୁ ଯେ ସ୍ୱନ ବାଜଣା ....
ସବୁ ଏତ ବନ୍ଧୁ ସରଜନା।

ଅର୍ଘ୍ୟ ବାଢ଼େ ଦୀନ କବି ତେଣୁ
ଲଭିବାକୁ ବନ୍ଧୁ—କୃପା—କଣା ।



# କବିତା ଲେଖିବ



ଯେଉଁ ପଥେ ଅଜ  ଚାଲିଛୁ ବନ୍ଧୁ
ଚାଲିଛୁ ମୁହିଁ
ସେ ପଥୁ ଭରତ  ଦେବନ କହୁଛି
ଶାସ୍ତ୍ର ଛୁଇଁ
ଉପହାସ ତୁମେ  କରୁଥାଅ ପଛେ
ନାହିଁ ମୋ ଡ଼ର
ଗାଳି ବର୍ଷଣ  ଯେତେ ଯାହା ତୁମେ
କରୁଛ କର
ବନ୍ଧୁ ମୋର ।

ତୁମେ କହ ମୋର  କବିତା ଗୁଡ଼ାକ
ବାଜେ ଛି.... ଛି....
କବିତା ଲେଖିବା  କଉଶଳ ମତେ
ଜଣାନା କିଛୁ
ସେଥିଲାଗି ସବୁ  ସଂପାଦକଙ୍କ
ବଢ଼ିଛି ଘୃଣା
କବି ବୋଲି ମୋର ନାମଟି ଏ ଯାଏ
ଯାଇନା ଶୁଣା
ବଢ଼ିଛି ଘୃଣା ।

ମଥା ପାତି ସବୁ  ମାନ ଅପମାନ
ନେବଇଁ ବରୁ
ଖୁଣ୍ଟିଯିବ ଯେବେ  ବାଧା.... ଅପବାଦ
ପାଦରେ ଦଳି
"କବିତା ଲେଖିବି" ଶପଥ କରୁଛି
ବନ୍ଧୁ ମୁହିଁ
କବିତାରେ ଖାଲି  ମୋହି ଦେବି ମୋର
ଜନ୍ମ ଭୂଇଁ
ସେତେ ବେଳେ ତୁମେ ବନ୍ଧୁ ମୋର
ଯାଚି କରି ମୋତେ ଦେଇଯିବ ଶତ ପୁରସ୍କାର ।



# ନଷ୍ଟନୀଡ଼

ବସନ୍ତର ଦଶମୀ ଇନ୍ଦୁ
ଆକାଶେ ଯେବେ ଉଇଁଲା
ସ୍ନିଗ୍ଧ ତା'ର ରଜତ—ଜ୍ୟୋତ୍ସ୍ନା
ଦଶ୍ ଦିଗନ୍ତେ ଫୁଟିଲା ।

ଅଳସ ତା'ର ମଳୟ ବୁକେ
କପୋତୀ ଏକ ଗୁମର କଣ୍ଠେ
ଦୂରନ୍ତ କେଉଁ ବନ ଶାଖାରୁ
ଭରଦ୍ୱ ଗୀତ ଶୁଭିଲା
ବସନ୍ତର ଦଶମୀ ଇନ୍ଦୁ
ଆକାଶେ ଯେବେ ଉଇଁଲା ॥

ପ୍ରବାସୀ ମୁହିଁ ଏକାଲେ ବସି
ହେଜଇ ସୁନା—ଅତୀତ
ହଜିଲ ଦିନ ଲୁଚିଲ କଥା
. ସବୁରି ହୃଦେ ଗଚ୍ଛିତ.... ।

.........ନୀରବ ଏକ ଜୋଛନା ସ୍ରୋତେ
ଭ୍ରମର ଗୁଞ୍ଜେ କାହାର ସାଥେ
କୋମଳ ହସଁ ପଦ୍ମରେ, ତା'ର
ଚୁମ୍ବନଟି ନମିତ୍ତ
ପ୍ରବାସୀ ମୁହିଁ ଏକାଲେ ବସି
ହେଜଇ ସୁନା ଅତୀତ ।

ଅଧରେ ତା'ର ଅଧର ରଖି
ସଜାଉ ଦର୍ପ ଉର୍ବଶୀ
ମଦିରା ପାନେ ମାତାଲ ହୋଇ
ଯାପଇ ଧରା ଶର୍ବରୀ ।

ବାହୁରେ ବାହୁ ଛନ୍ଦି ଦେଇ
କୋମଳ ହସ୍ତ ପରଶ ପାଇ

# ନଷ୍ଟନୀଡ଼

ସରସ ଫୁଲେ ଝଲୋର ହୁଏ....
ସନ୍ତ୍ର ନଟରେ ମୋହର
ଅଧରେ କାର ଅଧର ରଖି
ସଜାଡ଼ି ଦଏ କବରୀ ॥

ସରଗର ସେ ପସ୍ୱିଷ୍ଟ ପରି
ସୁନ୍ଦର ଗୋ ସୁନ୍ଦର
ଗୌର କାନ୍ତି ଶୋଷିବ ମୋ
କାଞ୍ଚ କୃଷ୍ଣ କୁନ୍ତଳ ।

ବଢ଼ିଲ ତା'ର ଚଞ୍ଚଳା ଗତି
ରୂପର ସୁଧା ପାନରେ ମାତି
ରୁଦ୍ର ରୂପେ କରେ ମୁଁ ପାନ
ଦଂଶର ଯା ଗରଳ
ସରଗର ସେ ପସ୍ୱିଷ୍ଟ ପରି
ସୁନ୍ଦର ଗୋ ସୁନ୍ଦର.... ॥

ଏ ସବୁ କଥା ଛାଡ଼ନ୍ତୁ ପର
ଅଛି ହୁଏ ମାନସେ
ଦୂରେ ସେ ଅଜ୍ଞ ଦୂରେ ସୁଦୂରେ
କାଟେ ମୁଁ ଦିନ ବରଷେ ।

ତମାଳ ତାଳ ଅମ୍ର ଛଳେ
ତରୁ ବଥିକା କାନନ ସ୍ତରେ
ଝରଇ ଯେଉଁ ଗୋଧୂଳି—ରଙ୍ଗ
ସୁଦୂର ପ୍ରାଚୀ ନଭସେ
ନକ୍ଷତ୍ରଗୀତ ପଙ୍କ୍ତି କାହିଁ
ଶଯ୍ୟା ରଚେ ହରଷେ ॥



# ମନେପଡ଼େ

ମନେପଡ଼େ ସେ ଦିନର ସ୍ନେହ
ଅଶ୍ରୁ ଭରା ବିଦାୟ କାଟତା......
"ପୁଣି କେବେ ହୋଇବ ମିଳନ
ଅହେ ପ୍ରିୟ ପରାଣ ଦେବତା "

ଚନ୍ଦ୍ରକର ଜୋଛନା ଜୁଆରେ
ତୁମେ ସିନା ବୁଦ ଗୋ ମୋ ସାଥେ
ବୀଣା ଝଣା ସଙ୍ଗୀତ ଲହର
ଅଛ ସିନା ଉଡ଼ୁ ନାହିଁ ସତେ ।

ମନେପଡ଼େ ମନେପଡ଼େ ସବୁ
ଗୋଟି ଗୋଟି ଘଟୁଥିବ ମନେ
ବଉଦ୍ଧାର ହୃଦୟ କନ୍ଦରେ
ଅଙ୍କିତ ଯା ବିଦାୟ ଲଗନେ ।

ଅଶ୍ରୁଭରା ସେ ନୟନ ଯୁଗ
ଛଳ ଛଳ ଦରୋଟି ବଚନ
ସ୍ନେହ ଭରା ଅଧା ହସ ମିଶା
'ମିନତି' ଟି ଭୁଲିବି କି ମନ୍ତୁ ।

...ପ୍ରେମଗଛ ଛାଇ ତଳେ ଯେବେ
ଥିଲୁ ଦୁହେଁ ସୁଖେ କ୍ରୀଡ଼ାରତ
ଝରଣାଟି ବୁକୁ ଉଚ୍ଛୁଳାଇ
ଗାଉଥିଲା କୁଲୁ କୁଲୁ ଗୀତ ।

## ମନେପଡ଼େ

ପକ୍ଷୀର କୂଜନ ଭରା
କାନନର ମଧୁର ମୂର୍ଚ୍ଛନା
ଶୁଭୁଥିଲି ଦୂର ଦିଗନ୍ତରେ
ଯେବେ ପ୍ରିୟେ ଅୟି ସୁଲୋଚନା ।

....ସେ ବେଳର ସେ ମଧୁର ସ୍ମୃତି
ସେ ବେଳର ସେ ପ୍ରବଣ ଛବି
ପରଶେ ମୋ ଜାଗରତ କର
ଦୂର କରେ ଶତ ସ୍ୱପ୍ନ ଦୁଃଖ ।

ମୁହିଁ ସିନା ଦୂରେ.... ବନ୍ଧୁ ଦୂରେ....
କିନ୍ତୁ ସଖି ମନେ ହୁଏ ମୋର
ତୁମେ ମୋର ପାଖେ.... ଅଛ ପାଶେ
ଭଙ୍ଗି ଅଛ ପ୍ରେମର ଶୃଙ୍ଖଳ ।



## ସ୍ମୃତି ଉଦ୍‌ଗାର

ତୁମେ ଯେବେ ଅଙ୍କ ପର କରି ଦେଲ ମୋତେ ସଖି
ଅନ୍ଧାର ବୋଲି କରିପାରିଲିନ ବିଚାର
ଦୁନିଆରେ ତେବେ କେସନେ କାଟିବି ଏତେ କାଳ
ଅତୀତର ସବୁ ମରମର କଥା ଚୁପିରଖି ।

# ସ୍ମୃତିଗାର

ଭଲ ପାଇବାର ମୂଳେ ଯେବେ ସଖି ଏତା ଥିଲା
ଏତେ ସ୍ନେହ ଦେଇ ଅପଣାର ମୋତେ କାହିଁ କଲ
ସଉନପଣ ଏ ଅଳପ ଦିନରେ ଭୁଲି ଗଲ,
ଜୀବନେ ମୋ ଖାଲି ନୟନର ବାରି ବରଷିଲା ।

ତମର ସ୍ନେହଟି ଭୁଲି ପାରିବନି ଜମା ସଖି
ତମେ ଯଛେ ଅଛ କରି ଦେଇଥାଅ ମତେ ପର
ପ୍ରେମ ସ୍ୱର୍ଗରେ ଅମର ଗୋ ଏହି କାରବାର
ଚିର ଦିନ ପାଇଁ ସ୍ମୃତି—ଗାର ହୋଇ ରହୁବଟି ।



# ଅଲିଭାଷା

ସେ ଦିନ ବନ୍ଧୁ      ସସ୍ମିତ ମୁଖେ
ଇଙ୍ଗିତ ଦେଲ ମତେ
ଅନ୍ତର ମମ      ପୁଷ୍ପିତ ହେଲା
ନବ ଉଲ୍ଲାସେ ସତେ,
ବସନ୍ତ ଗରବେ ହେଲି ମୁଁ ପାଗଳ
ନବୀନ ଆଶାରେ ହେଲି ମୁଁ ବିହ୍ୱଳ
ମନଭୁଲାଣିଆ      ରୂପଟି ତୁମର
ଫୁଟିଲା ମୋ ହୃଦପଟେ
ସେ ଦିନ ବନ୍ଧୁ      ସସ୍ମିତ ମୁଖେ
ଇଙ୍ଗିତ ଦେଲ ମତେ ।

ସେ ଦିନର ସ୍ନେହ      ମଧୁର ଲଗନେ
ପଲ୍ଲବିଲ ମତେ ଯେବେ—
'ଭୁଲି ଯାଅ ସବେ!      ଅଳସ ଦିନରେ
ଭୁଲିଯିବନିତ କେବେ',

ସରମରେ ତମ ମଥା ଗଲା ନଇଁ
'ହଁ'....'ପାଣିଗ୍ରହଣ' ଯେବେ ଦେଲ କହି;
ହୃଦ୍ୱଙ୍କର ଅକ୍ଷି ଗଲା ଅଗୋ ଲକ୍ଷି
ଝଂଧାର ମିଳନରେ
ଚେଷ୍ଟନର ଚେହ୍ନ: ମଧୁର ଲଗନେ
ପଶୁରଲ ମତେ ଯେବେ ।

ଅଜ ଗୋ ବନ୍ଧୁ ଭୁଲିନି ମୁଁ ସେହି
ଅଦ୍ୟ ଯୌବନ କଥା
ମାନସପଟେ ମୋ ଏବେବି ଅଙ୍କା
ଅଙ୍କିତ ପ୍ରୀତିଗାଥା
ସରଳ ସେ ତୁମ ହାସ୍ୟ ଚପଳ
ମୁନି—ମନ—ଭୁଲା ରୂପଗୋ ତରଳ
ଅନ୍ତର ତଳେ ନୀରବ ମୋ ଜଳେ
ଉପୁଜାଇ ଚୋଟ ବ୍ୟଥା;
ଅଜଗୋ! ବନ୍ଧୁ ଭୁଲିନି ମୁଁ ସେହି
ଅଦ୍ୟ ଯୌବନ କଥା ।

